ଓଁ କବି ମନୋହର ମେହେର ରଚିତ

# ମହାପ୍ରଭୁ ଜଣାଣ ମାଳା

— ସଂକଳକ ଓ ପ୍ରକାଶକ —

ଶ୍ରୀ ନାରାୟଣ ଭରସା ମେହେର

"ମନୋହର କବିତା ବାସ"

ସିନାପାଲି

ଜିଲ୍ଲା — କଳାହାଣ୍ଡି (ଓଡ଼ିଶା)



ପ୍ରଥମ ସଂସ୍କରଣ-୧୯୮୪

— ପ୍ରାପ୍ତି ସ୍ଥାନ —

ବାଣୀ ଭଣ୍ଡାର

ବ୍ରହ୍ମପୁର-୧ ଗଞ୍ଜାମ

ମୂଲ୍ୟ — ୧-୫୦

# ସୂଚୀପତ୍ର

ଶ୍ରୀ ଗଣେଶାୟ ନମଃ

# ମହାପ୍ରଭୁ ଜଣାଣ

## ପ୍ରଥମ ଛାନ୍ଦ

ରାଗ—କାମୋଦୀ

ହେ ପ୍ରଭୁ ଜଗନ୍ନାଥ          କମଳା ଦେବୀ କାନ୍ତ
ଶ୍ରୀ ନୀଳ ଶଇଳ ବହୀଷ୍ଣ
ଗରୁଡ ପଛେ ରହି          ଦୁଃଖିତ ଜଣାଉଛି
କର୍ପା ନ ଶୁଣୁଛ ଗୁହାରି ହେ
ମହାପ୍ରଭୁ ।

ଧନ୍ୟ ହେ ମହ୍ୱା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ          ଅଛ ସର୍ବ ସ୍ଥଳେ
ବାସ ଭୁମୁର ନୀଳଗିରି ହେ । ମହାପ୍ରଭୁ ( ପଦ )
ବ୍ରହ୍ମା, ବିଷ୍ଣୁ, ଶଙ୍କର          ତ୍ରିମୂର୍ତ୍ତି ଅବତାର
ରାମକୃଷ୍ଣ ସୁଭଦ୍ରା ନାମେ
ଦିବ୍ୟ ଆସନେ ବସି          ଖଣ୍ଡୁଛ ଦୁଃଖରାଶି
ଦିଶି ବୈକୁଣ୍ଠ ପୁଣ୍ୟଧାମେ ହେ
ମହାପ୍ରଭୁ ।

( ୧ )

ଛାମୁରେ ଖଗବର          ଜଣାଏ ଯୋଡ଼ି କର
ତବ ଶ୍ରୀପାଦେ କରି ଧ୍ୟାନ ।
ଭକତ ଗଣେ ବସି          ଭଜନ୍ତି ଦିବା ନିଶି
ନାମକୁ କରଣ କୀର୍ତ୍ତନ ହେ
ମହାପ୍ରଭୁ ।

( ୨ )

ଧନ୍ୟ ସେ ବଡ଼ ଦାଣ୍ଡେ    ଘୁଞ୍ଚିଲେ ପାପ ଖଣ୍ଡେ
ଭକତଗଣେ ଯହିଁ ଠୁଳ
ବାଜେ ଶଙ୍ଖ ମହୁରୀ    ମୃଦଙ୍ଗ ଭେରୀ ତୁରୀ
ଶୁଭଇ ଡାକ ହରିବୋଲ ହେ ।
ମହାପ୍ରଭୁ ।

( ୩ )

ଧନ୍ୟ ତବ ମହିମା    ନୀଳ ଚକ୍ରେ ବାନା
ଉଡୁଛି ଫରହର ନେତ
ପତିତ ଉଦ୍ଧାରଣ    ହେ ପ୍ରଭୁ ପରଂବ୍ରହ୍ମ
ଆର୍ତ୍ତିଜନର ଫେଡ଼ ଅର୍ତ୍ତି ହେ ।
ମହାପ୍ରଭୁ ।

( ୪ )

ଦେଖନ୍ତି ଦେବବୃନ୍ଦ    ସ୍ୱର୍ଗେ ହୋଇ ଆନନ୍ଦ
କରନ୍ତି ଜୟ ଜୟ କାର ।
ବାଇ ଦୁନ୍ଦୁଭି ବାଦ୍ୟ    ଅପସରାଦ ବୃନ୍ଦ
ନୃତ୍ୟ କରନ୍ତି ସ୍ୱର୍ଗପୁର ହେ
ମହାପ୍ରଭୁ ।

( ୫ )

ହେ ପ୍ରଭୁ ଚକାଡୋଳା    ଭକତ ଭାବେ ଭୋଳା
ବିଶ୍ୱମୋହନ ଶୋଭାବନ ।
ଶିରେ ସେବତି ଚୂଳ    ଗଳେ ତୁଳସୀ ମାଳ
ହୃଦେ କୁଙ୍କୁମ ଭୂଷଣ ହେ
ମହାପ୍ରଭୁ ।

( ୬ )

କପାଳେ ଗୋରୋଚନା    ବାଳ୍ୟ ସବିତା ଜଣା
ନାସାରେ ଶ୍ରୀହରି ମନ୍ଦିର

କଣ୍ଠେ ଯଜ୍ଞୋପବୀତ ଅଙ୍ଗେ ଚନ୍ଦନ ଚର୍ଚ୍ଚିତ
ପୀତ ବସନ ଶୋଭାକର ହେ
ମହାପ୍ରଭୁ ।

( ୭ )

ସୁମିଷ୍ଟ ଦ୍ରବ୍ୟମାନ ପୂତ ଅନ୍ନ ବ୍ୟଞ୍ଜନ
ଭୋଗାଦ ତବ ଭୁଞ୍ଜା ଯାତ ।
ବସ୍ତୁ ନିର୍ମାଲ୍ୟ ବୋଲି ଭକ୍ତେ ଭୁଞ୍ଜନ୍ତି ଟୋକି
ତଦନ୍ତେ ମୁଣ୍ଡେ ପୋଛୁ ହାତ ହେ
ମହାପ୍ରଭୁ ।

( ୮ )

କମ୍ବୁ ରଥାଙ୍ଗ ଗଦା ପଦ୍ମ ଶ୍ରୀ ଧର କର
ଧର୍ମ-ମଣ୍ଡନେ ଅଛ ବସି
ଅଖିଳ ଉଦ୍ଧାରଣ ହେ ପ୍ରଭୁ ଜନାର୍ଦ୍ଦନ
ଯା ନାମ ଅଟେ ବ୍ରହ୍ମରାଶି ହେ
ମହାପ୍ରଭୁ ।

( ୯ )

ରାମ ଯେ ଜ୍ୟେଷ୍ଠ ଭ୍ରାତ ରୋହିଣୀ ଦେବୀ ସୁତ
ସୁଭଦ୍ରା ଯଶୋଦା ତନୁଜା ।
ଭାଇ ଭଗିନୀ ମେଳେ ବସିଛ ନୀଳାଚଳେ
ଏ କଳି କାଳେ ପାଇ ପୂଜା ହେ
ମହାପ୍ରଭୁ ।

( ୧୦ )

ଜଳେ ସ୍ଥଳେ ଅନଳେ ସକଳ ଜୀବ ପରେ
ବିରାଜି ଅଛ ଦେବବର ।

ତୁମ୍ଭ ନଥିଲ କାହିଁ	ଜଗତ ମଧ୍ୟେ କାହିଁ
ସଚରାଚରେ ଅଛ ପୂରି ହେ
ମହାପ୍ରଭୁ ।

( ୧୧ )

ଆଦ୍ୟାବତାରେ ହରି	ମୀନ ସ୍ୱରୂପ ଧରି
ବେଦ ଉଦ୍ଧରି ଶୋମାରି ।
କୂର୍ମ ରୂପେ ଶ୍ରୀଧର	ପୃଷ୍ଠେ ବହି ମନ୍ଦର
ଉଣ୍ଡାସି ରଖି ବସୁନ୍ଧରା ହେ
ମହାପ୍ରଭୁ ।

( ୧୨ )

ବରାହ ରୂପେ ହରି	ଦନ୍ତାଗ୍ରେ ଧରାଧରି
ହିରଣାକ୍ଷ ଦନୁଜ ମାରି ।
ନୃସିଂହ ରୂପ ଧରି	ସ୍ତମ୍ଭ ମଧ୍ୟୁ ବାହାରି
ହିରଣ୍ୟ ବୁକୁ ଦେଲ ଚିରି ହେ
ମହାପ୍ରଭୁ ।

( ୧୩ )

ଦ୍ୱିଜ ସ୍ୱରୂପେ ଦାନ	ମାଗି ତିନି ଚରଣ
ପାତାଳେ ବଳିକି ଚାପିଲ
ନାମ ପରଶୁରାମ	କ୍ଷତ୍ରିପୁ କୁଳ ଯମ
ଜନମି ବସୁଧା ଶୋଧିଲ ହେ
ମହାପ୍ରଭୁ ।

( ୧୪ )

ଶ୍ରୀରାମ ସ୍ୱରୂପରେ	କଉଶଲ୍ୟା ଉଦରେ
ଜନମି ମାଇଲ ରାବଣ ।

ପୃଥ୍ୱୀର ଘରଘର    ନାଶି କୋଦଣ୍ଡଧର
ତାରିଲ କେତେ ଭକ୍ତଜନ ହେ
ମହାପ୍ରଭୁ ।

( ୧୫ )

ବୌଦ୍ଧ ରୂପେ ନଷ୍ଟଲେ    ବସିଛ ନୀଳାଚଳେ
ଜଗନ୍ମୋହନ ପୁରେ ହରି ।
ଅମର ନାଗବର    ଶଶାଙ୍କ ଦିବାକର
ଯାଙ୍କୁ ଅଛନ୍ତି ଅନୁସରି ହେ
ମହାପ୍ରଭୁ ।

( ୧୬ )

ସକଳ ତୀର୍ଥ ଧରି    ବସିଛ ନୀଳଗିରି
ତବ ଦର୍ଶନେ ସେତୁ ଯିବ ।
କୈବଲ୍ୟ ଭାତ ଖାଇ    ଅନ୍ତେ ମୁକତି ପାଇ
ଶମନ ଭୟୁଁ ପାରି ହେବ ହେ
ମହାପ୍ରଭୁ ।

( ୧୭ )

ଜ୍ଞାତ ଅଜ୍ଞାତ ପାପ    ଥିବ ଯାହାର ଗାଢ଼
ତବ ଦର୍ଶନେ ଦୂର ହେବ ।
ଆହେ ଚକା ନୟନ    ତୁମେ ତ ସବୁ ଜାଣ
ମହିମା ଜଗତେ ଦୁର୍ଲ୍ଲଭ ହେ
ମହାପ୍ରଭୁ ।

( ୧୮ )

ସ୍ୱର୍ଗ ବଦନେ ଧାତା    ଆବର ପଞ୍ଚମଥା
ଜପି ଯା ଅନ୍ତ ନ ପାଆନ୍ତି ।

ଯାର ନାମ ଅନନ୍ତ ମହିମା ନାହିଁ ଅନ୍ତ
ଅରୂପାନନ୍ଦ ପୂର୍ଣ୍ଣମୂର୍ତ୍ତି ହେ
ମହାପ୍ରଭୁ

( ୧୯ )

ନ କର ତୀର୍ଥ ବ୍ରତ ଦାନ ପୁଣ୍ୟ ଧର୍ମ ତ
ଅଜ୍ଞାନ ଜନ ଅଟେ ମୂର୍ଖ
ଖଣ୍ଡି ବ ଦୁଃଖରାଶି ହେ ପ୍ରଭୁ ବ୍ରହ୍ମରାଶି
ଏତକ ମାଗୁଣି ଗୋସାଇଁ ହେ
ମହାପ୍ରଭୁଂ ।

( ୨୦ )

ହେ ପ୍ରଭୁ କୃପାସିନ୍ଧୁ ଯଦୁକୁଳର ଇନ୍ଦୁ
ନାମ ବହିଛ ଘନବନ୍ଧୁ ।
ହେଲେ ତୁମ୍ଭ କରୁଣା ମୋ ଦୁଃଖ ହେବ ଊଣା
ଡ଼ାକ କହୁଛେ କୃପାବନ୍ଧୁ ହେ
ମହାପ୍ରଭୁ ।

( ୨୧ )

ବିଷୟା ରସେ ରସି ମାୟା ଜଞ୍ଜାଳେ ପଶି
ଭବ ସାଗରେ ଗଲି ଭାସି ।
ତୁମ୍ଭ ବାହାରେ କେହି ରଖନ୍ତା ଆଉ ନାହିଁ
ବସି ଭାବଇ ଦିବା ନିଶି ହେ ।
ମହାପ୍ରଭୁ ।

( ୨୨ )

କହଇ ମନୋହର ଦୁଃଖ ହର ମୋହର
ଉଦ୍ଧାର କର ଭଗବାନ
ତବ ନାମ ନଉକା ଭେଳା ଚରଣ ଏକା
ଚରିବ ମାଳଞ୍ଚ ନନ୍ଦନ ହେ
ମହାପ୍ରଭୁ ।

( ୨୩ )

ଧନ୍ୟ ହେ ମହିମା ଭୂମ୍ବର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ପୂରିଛ ସର୍ବସ୍ଥଳେ
ବାସ ଭୂମ୍ବର ଶାଳଗିରି ହେ ।
ମହାପ୍ରଭୁ ।

ଇତି ମହାପ୍ରଭୁ ଜଣାଣମାଳା ସଂପୂର୍ଣ୍ଣମ୍

—:o:—

# ଗରିବ ଜଣାଣ

## ରାଗ—କଲ୍ୟାଣ ଆହାରୀ

( ୧ )

ହରି ହେ, ଦୁଃଖିଜନ ଦୁଃଖ    ଫେଡ଼ କଞ୍ଜମୁଖ
ନିଦ୍ରା ନ ମାଡ଼ଇ ନୟନ ।
ଉଠଇ ବସଇ    ନିଶ୍ୱାସ ଛାଡ଼ଇ
ଯୋଗୁ ଏ ନିର୍ଦ୍ଧନ ଜୀବନ ।
ହରି ହେ, ଧନ ହୀନ ଯେତୁ ସଂସାରେ
ଧନ ଜନ ଦୁହେଁ    ଯାକୁ ଉପେକ୍ଷିଲେ
ଗଣ୍ୟ ନୁହେ ସେହୁ ଲୋକରେ ।

( ୨ )

ହରି ହେ, ଧନେ ଯେ କୁବେର    ନିର୍ଦ୍ଧନେ ଫକୀର
ଧନ ଥିଲେ କୁଳ ଉଜ୍ଜ୍ୱଳ
ଧନ ଥିଲେ ଶ୍ରେଷ୍ଠା    କହେ କଥା ମୋଟା
ଶତ୍ରୁ ଖଟେ ତା ପାଦ ତଳ
ହରି ହେ, ଧନ ଅଛି ଘରେ ଯାହାର ।
ଯେଣିକି ଗମନ    କଲେ ପାଏ ମାନ୍ୟ
ମନ ଉଲ୍ଲସିତ ତାହାର ।

( ୩ )

ହରି ହେ, ହୀର ମାଳା ମୋତି    ମାଣିକ୍ୟର ଜ୍ୟୋତି
ଗୃହକୁ କରଇ ଶୋଭନ ।
ଭାର୍ଯ୍ୟା ବଧୂ ସୁତ    କୁଟୁମ୍ବ ସହିତ
ନାନା ଅଳଙ୍କାର ଭୂଷଣ ।
ହରି ହେ, ସୁରୂପ ଧନରେ ସୁନ୍ଦର

ପାଟ ପୀତାମ୍ବର ଭୂଷଣେ ଶରୀର
ଏ ବେଶର ଧନ୍ୟ ଲୋକର ।

( ୩ )

ହରି ହେ, ଚ୍ଛିଣ୍ଡା କନ୍ଥା ବାସ ଦରିଦ୍ରଙ୍କ ବେଶ
ଅନ୍ନ ବିନେ କ୍ଷୀଣ ଶରୀର
ଋଣ ବାଡ ଯୋଗୁଁ ପେଟ ନ ପୂରଇ
ମହାକଷ୍ଟେ ଯାଏ ବାସର ।
ହରି ହେ, ଯେ ଜନ ଗରିବ ହୋଇଲା
ବନ୍ଧୁ ବାନ୍ଧବାଦ କେହି ନ ପୁଚ୍ଛନ୍ତି
ଭଲ ଭଲ ଧନ ନଗଲା ।

( ୪ )

ହରି ହେ, ହଳ ଲଙ୍ଗଳରେ ବୃଷ ଆରମ୍ଭିଲେ
ବିଲରେ ଘାସ ଗଲା ପୂରି
କା ଆଗେ କହିବ ହୃଦୟ ବେଦନା
କେ ଶୁଣିବ ମୋ ଗୁହାରି
ହରି ହେ, ବିଲ ତ ନୁହଇ ପଡିଆ
ମୋହ ଚକ୍ଷୁରକୁ କହିବ କାହାକୁ
ମୋହର କରମ ଖଣ୍ଡିଆ ।

( ୫ )

ହରି ହେ, ପଡିଆ ବିଲରେ ଧାନ ପାଚିଗଲା
ମୋର କର୍ମେ କପା ନୋହିଲା ।
ଖତ ସାର ନେଇ ଜମିରେ ଦିଅନ୍ତେ
ଆନେ କ ମରୁଡ଼ି ପଡିଲା
ହରି ହେ, ତନୁକ୍ଷୀଣ ଅନ୍ନ ବିହୁନେ ।

ତୁମ୍ଭେ ପିତାମାତା ଅଟ ଅନ୍ନଦାତା
ରକ୍ଷାକର ପ୍ରଭୁ ଏ ଘେନେ ।
( ୬ )
ହରି ହେ, ଅକରମା ନର କର୍ମ ହୀନ ମୋର
ବାଲ୍ୟ କାଳରୁ ମୁହିଁ ଦୁଃଖୀ ।
ମହାକଷ୍ଟେ ବଞ୍ଚି ଦିନ ଯାଉଅଛି
ତୁମ୍ଭର ପାଦେ ଚିତ୍ତ ରଖି
ହରି ହେ, ଅଖିଳ ଜନର ଠାକୁର
ଦୀନ କୃପାନାଥ ଆହେ ଗଦାଧର
ଦୁଃଖୀର ଦୁଃଖ କର ଦୂର ।
( ୭ )
ହରି ହେ, ଋଣ ଚିନ୍ତା, ଅନ୍ନ- ଚିନ୍ତା, ବ୍ୟାଧି ଚିନ୍ତା,
ଶତ୍ରୁ ଚିନ୍ତା, ତନୟ ଚିନ୍ତା,
ଏଥି ପଞ୍ଚ ଚିନ୍ତା ଯାର ବଳବନ୍ତା
ତା ଜନମ ଅଟଇ ବୃଥା ।
ହରି ହେ, ଚିନ୍ତାମଣି ନାମ ତୁମ୍ଭର ।
ଚିନ୍ତାମଣି ଚିନ୍ତା- ଦୂର କରିଯାର
କଷ୍ଟିତ ମାନଙ୍କେ ଦୁଃଖୀର ।
ହରି ହେ, ସୁଦାମା ଦାରିଦ୍ର୍ୟ କରିଲ ଭଞ୍ଜନ
ଅନ୍ଧକୁ ଯେ ଦେଲ ଲୋଚନ
କୁରୁସଭା ତଳେ ପାଞ୍ଚାଳୀ ଡାକନ୍ତେ
ଦେଇଅଛ କୋଟି ବସନ
ହରି ହେ, ଶୁଣିଅଛ ଏଣୀ ଗୁହାରି
ହରିଣୀ ଉଦର ବ୍ୟାଧ ଭୟୁ ପାରି
କରିଅଛ ପ୍ରଭୁ ଶ୍ରୀହରି ।

(୯)

ହରି ହେ, କେ ନୁହେ କାହାର ଅନିତ୍ୟ ସଂସାର
ସୁତ ଦାରାଦି ସମ୍ପତ୍ତି ।
ଗଲାବେଳେ କେହୁ ସଙ୍ଗରେ ନଯିବେ
ଆସିଅଛୁ ଯିବ ସେମିତ ।
ହରି ହେ, ଜଣାଏ ଦୀନ ମନୋହର ।
ଏ ମାୟା ସଂସାରୁ ପାରିକର ପ୍ରଭୁ
ଶ୍ରୀପାଦେ ଜଗଅ କଙ୍କର ।

(୧୦)

ଇତି ଗରବ ଜଣାଣ ସଂପୂର୍ଣ୍ଣମ୍

—:o:—

# ଗଜ ଉଦ୍ଧାରଣ ଜଣାଣ

(୧)

ହରି ହେ, ରଖ ନାରାୟଣ ଜଗତ ଜୀବନ
ଶ୍ରୀପାଦେ ଗଲି ଶରଣ,
ତୁମ୍ଭେ ନ ରଖିଲେ ଆନ କେ ରଖିବ
କୁମ୍ଭୀର ନେଉଛି ପ୍ରାଣ,
ହରି ହେ, ମୁହିଁ ନୁହେ ତା ଉଗାସ୍ତ,
ଅଗାଧ ଜଳରେ ଗ୍ରାସୁ ଅଛି ନକ୍ର
ଧରି ଚରଣକୁ ଧରି ।

( ୨ )

ହରି ହେ, ଶୁଷ୍କ ବାଳି ପରେ ସମୁଦ୍ର ତୀରରେ
ପଡ଼ ରହିଥିଲ ଗ୍ରାହା
ମିଛ ଭାବେ ମୋତେ ଧର୍ମ ସାକ୍ଷୀ କରି-
କାରୁଁ ମୁଁ ଅଣିଲ ତାହା
ହରି ହେ, ସମୁଦ୍ର ଜଳେ ରଖିଲ ।
ଢେଉଁ ପଡ଼ ଜଳେ ଆହ୍ଳୋଷି ଧରଣ
ବକ୍ଷେ ଦେଇଅଛୁ ଗିଳ ।

( ୩ )

ହରି ହେ, ଦୁଃଖୀର ସଂଖାଳ ଅଟ ବନମାଳୀ
ଭକତଙ୍କ ପ୍ରାଣଧନ ।
ମୁହିଁ ପଶୁ ଜାତି କରୁଛି ଛନତ
ଫେଡ଼ ମୋହର କଷଣ ।
ହରି ହେ, ବଞ୍ଚିବାର ନାହିଁ ଆଶା
ଆରତ ତାରଣ ନାମ ବହୁଅଛ
ତେଣୁ ମୁଁ କଲି ଭରସା ।

( ୪ )

ହରି ହେ, ରକ୍ଷାକର ହରି ଶଙ୍ଖ ଚକ୍ରଧାରୀ
ସଙ୍କଟ କାଳେ ଡାକୁଛି ।
କରୁଣା କଟାକ୍ଷ ଧରି ଦେବହରି
କାଟ ଗଜ ଜଣାଉଛି ।
ହରି ହେ, କୃପା ନେତ୍ରେ ପ୍ରଭୁ ଦେଖ
ଜଗତେ ତୋ ଯଶ ହୋଇଛି ପ୍ରକାଶ
ଡାକୁଅଛି ଗଜମୂର୍ଖ ।

( ୫ )

ହରି ହେ, ପୂର୍ବଜନ୍ମ କାଳେ    କେଉଁ ପାପ ଫଳେ
ତେଣୁ ହେଲ ଗଜ ଜନ୍ମ
ଏ ଘୋର ଆପଦୁଁ    ପାରକରି ରଖ
ପ୍ରଭୁ ଦେବକୀ ନନ୍ଦନ
ହରି ହେ, ରଖ ରଖ ବ୍ରହ୍ମସଣି
ନୋହିଲେ ଜୀବନ    ଗଲ ଅକାରଣ
ତବ ନାମ ଘୋଷି ଘୋଷି ।

( ୬ )

ହରି ହେ, ସୁବାହୁ ବନରେ    ଡାକଲ ହରିଣୀ
ବ୍ୟାଧ ଭୟୁଁ ଉଦ୍ଧାରିଲ
ଦ୍ରୌପଦୀ ଡାକିଲେ    କୁରୁସଭା ତଳେ
କୋଟି ବସ୍ତ୍ର ଦଆଇଲ
ହରି ହେ, ପ୍ରହଲ୍ଲାଦ ରକ୍ଷାକାରୀ
ସ୍ତମ୍ଭରୁ ବାହାରି    ନୃସିଂହ ରୂପେଣ
ହିରଣ୍ୟକୁ ହେଲ ଅରି ।

( ୭ )

ହରି ହେ, ତୁମ୍ଭେ ମୋର ପିତା    ତୁମ୍ଭେ ମୋର ମାତା
ତୁମ୍ଭେ ମୋର ହର୍ତ୍ତାକର୍ତ୍ତା
ହେ ମଧୁସୂଦନ    ପ୍ରଭୁ ଭଗବାନ
ସଂସାରେ ତୁହାଈ କଥା
ହରି ହେ, ସର୍ବଘଟେ ବରାଜନ୍ତ
ଦୁଷ୍ଟ ଜନ ମାରି    ସନ୍ଥଜନ ପାଳି
ଅର୍ତ୍ତୀ ଅର୍ତ୍ତି ନିବାରନ୍ତ ।

( ୮ )

ହରି ହେ, ପ୍ରାଣର ଷକଳେ, ସମୁଦ୍ରର ଜଳେ
ଗ୍ରାହା ମୁଖେ ପଡ଼ ଗଜ
ଘୁଟେଢ଼ ଜଳେ ରଡ ରଖ ରଖ ବୋଲି
ଜାଣିଲେ ତ ଦେବରାଜ
ହରି ହେ, ଜଗତରେ ବ୍ୟାକୁଳିତ
ସାଗର ଲହରୀ ହୋଇଲା ସ୍ତମ୍ଭିତ
ନ ବହୁ ସ୍ଥିର ମରୁତ ।

( ୯ )

ହରି ହେ, ସମୁଦ୍ରୁଁ ଦ୍ୱାରକା ଲକ୍ଷେ ଯୁଣ ଜାଣ
ଶୁଭିଲା ଗଜର ଡାକ
ଅନ୍ତର୍ଯ୍ୟାମୀ ପ୍ରଭୁ ଶ୍ରବଣେ ଶୁଣିଲେ
କୁମ୍ଭୀର ମୋଡୁଛି ବେକ
ହରି ହେ, ହୃଦଗତେ ବସ୍ତ୍ରଗଲେ
ଜଗତରେ ଯଶ ହୋଇବ ପ୍ରକାଶ
ନଷ୍ଟେ ରଖିବ ବୋଇଲେ ।

( ୧୦ )

ହରି ହେ, ପ୍ରେମ ମଣ୍ଡପରେ ପଶା ଖେଳୁଥିଲେ
ସତ୍ୟଭାମା ତୁଲେ ହରି
ରଖିଲୁଁ ରଖିଲୁଁ ବୋଲଣ ବୋଇଲେ
ପ୍ରିୟା ତୁଲେ ଥାଇ କରି
ସତ୍ୟା ଯେ, କହିଲେ କୃଷ୍ଣଙ୍କୁ ଚାହିଁ
କେଉଁଠି କାହାକୁ ରଖିଅଛ ହରି
ମୋ ଆଗେ କହ ବୁଝାଇ ।

( ୧୧ )

ହରି ହେ, ଶ୍ରୀକୃଷ୍ଣ କହନ୍ତେ ଗଜକୁ କୁମ୍ଭୀର
ଅଗାଧ ଜଳେ ଗିଳୁଛି
ଲକ୍ଷେ ପୂରଣ ଥାଇ ଶୁଣିଲ ତା ଡାକ
ଏଣୁ ଭଣିଲ କହୁଛି
ସଖି ଗୋ, ମନକୁ ନ ଆସେ ଯେବେ ।
ଗୁଳ ବେନ ଜନ ନୟନେ ଦେଖିବା
ସତ ଗୋ ମଣିବ ତେବେ ।

( ୧୨ )

ହରି ହେ, ସତ୍ୟା ସଙ୍ଗତରେ ଗରୁଡ଼ ପୃଷ୍ଠରେ
ଚଳିଗଲେ ନାରାୟଣ
ସମୁଦ୍ର କୂଳରେ ଯାଇ ପ୍ରବେଶିଲେ
ଦେଖିଲେ ଗଜ କଷଣ
ଶ୍ରୀହରି, କରେ ଚକ୍ର ଧରି କରି
କୁମ୍ଭୀରକୁ ମାରି ଗଜକୁ ଉଦ୍ଧରି
ଆଣିଲେ ଦେବ ମୁରାରି

( ୧୩ )

ହରି ହେ, କହେ ମନୋହର ଭକ୍ତି ହୀନ ନର
ମୁଁ ପାତକୀ ମୂର୍ଖ ଅତି
ଏ ଭବ ସାଗରୁ ପାରକର ପ୍ରଭୁ
ଅନ୍ତେ ଦିଅ ମୋକ୍ଷ ଗତି ।
ହରି ହେ, ଏତିକ ମାଗୁଣି ମୋର
ଜନ୍ମେ ଜନ୍ମେ ଦାସ କର ଜଗଧର
ଧ୍ୟାଏ ମାନଙ୍କ କୁମର ।

ଇତି ଶ୍ରୀ ଗଜ ଉଦ୍ଧାରଣ ଜଣାଣ ସମ୍ପୂର୍ଣ୍ଣମ୍

—ঃ০ঃ—

ଶ୍ରୀ ଗଣେଶାୟ ନମଃ

# କଳା ଶ୍ରୀମୁଖ

—ଅ ଠାରୁ କ୍ଷ ପର୍ଯ୍ୟନ୍ତ—

( ଅ )

ଅନାଇ କଳା ଶ୍ରୀମୁଖ
ଅନୁସର ଜଣାଉଛୁଁ ମୋ ଦୁଃଖ ହେ
କଳା ଶ୍ରୀମୁଖ ।
ଅଭୟ ପଞ୍ଜରେ ରଖ ହେ, କଳା ଶ୍ରୀମୁଖ । ୧ ।

( ଆ )

ଆନନ୍ଦ ଦାୟକ ବୋଲ
ଆନନ୍ଦରେ ପ୍ରଭୁ ଶରଣ ଗଲି ହେ
କଳା ଶ୍ରୀମୁଖ ।
ଆନନ୍ଦେ ରଖ ସନ୍ତାନ ହେ, କଳା ଶ୍ରୀମୁଖ । ୨ ।

( ଇ )

ଇନ୍ଦିରା ମାତା ବଲ୍ଲଭ
ଇହ ପରେ ସୁଖ ଦିଅ ଦୁର୍ଲ୍ଲଭ ହେ
କଳା ଶ୍ରୀମୁଖ ।
ଇଚ୍ଛାଏ ଶ୍ରୀ ପଦ୍ମନାଭ ହେ, କଳା ଶ୍ରୀମୁଖ । ୩ ।

( ଈ )

ଈନ୍ଦୀବର ମୁଖ ଶୋମ୍ଭ
ଈଚ୍ଛାମୟ ଶିରେ ସେବନ୍ତି ଗମ୍ଭ ହେ
କଳା ଶ୍ରୀମୁଖ ।
ଈନ୍ଦୁ ମାଳା ସୁନା ଲେମ୍ବ ହେ, କଳା ଶ୍ରୀମୁଖ । ୪ ।

( ଊ )

ଊଣ୍ଡ ହୋଇ ମାପ ମୂଳେ ।
ଊଚ୍ଚ ସ୍ୱରେ ବେଣୁ ବାଇ ସୁଚନ୍ତେ ହେ
କଳା ଶ୍ରୀମୁଖ ।
ଊଲ୍ଲସି ଗୋପୀକା ମେଳେ ହେ, କଳା ଶ୍ରୀମୁଖ । ୫ ।

( ଊ )

ଊତ୍ତମ ପବିତ୍ର ଜଳ
ଊଜାଣି ବହୁଛି ଯମୁନା କୂଳ ହେ
କଳା ଶ୍ରୀମୁଖ ।
ଊଦ୍ଧର ନାବିକ ହେଲ ହେ, କଳା ଶ୍ରୀମୁଖ । ୬ ।

( ଋ )

ଋତୁମାସ ଗ୍ରହ ଗଣ
ଋଷି ଗଣେ ଭୁମ୍ଭ ନାମ ଜପିଣ ହେ
କଳା ଶ୍ରୀମୁଖ ।
ରୂପକୁ କରନ୍ତି ଧ୍ୟାନ ହେ, କଳା ଶ୍ରୀମୁଖ । ୭ ।

( ୠ )

ୠଚ ବନ୍ଧୁ କର ପାର
ୠପାନନ୍ଦ ସ୍ୱାମୀ କର ଉଦ୍ଧାର ହେ
କଳା ଶ୍ରୀମୁଖ ।
ରୁକ୍ମଣୀ ଦେବୀଙ୍କ ବର ହେ, କଳା ଶ୍ରୀମୁଖ । ୮ ।

( ଌ )

ଌଚ ଗୋପେ ବେଣୁପାଣି
ଌବ୍ଧ ଖାଇଲ ସର ଲବଣୀ ହେ
କଳା ଶ୍ରୀମୁଖ ।
ଌଟିଲ ବ୍ରଜ କାମିନୀ ହେ, କଳା ଶ୍ରୀମୁଖ । ୯ ।

( ଌ )

ଲୃହ ନ ବହୁ ନ କାନ୍ଦ
ଲୃଚ ରାଧା ପାଶେ ବସ ଗୋବନ୍ଦ ହେ
କଳା ଶ୍ରୀମୁଖ ।
ଲୃକଚ ପ୍ରେମେ ଆନନ୍ଦ ହେ, କଳା ଶ୍ରୀମୁଖ । ୧୦ ।

( ଏ )

ଏଣୀ ଡ଼ାକ ଶୁଣା ହରି
ଏ କଷଣୁଁ ପ୍ରଭୁ କରବା ପାରି ହେ ।
କଳା ଶ୍ରୀମୁଖ ।
ଏବେ କା ଦେଲ ପାଶୋରି ହେ, କଳା ଶ୍ରୀ ମୁଖ ।୧୧।

( ଐ )

ଐଶ୍ୱର୍ଯ୍ୟ ବପୁଳ ଚଞ୍ଚା
ଐରାବତ ପତି ଗରବ ଚଞ୍ଚା ହେ
କଳା ଶ୍ରୀମୁଖ ।
ଐନ୍ଦ୍ରିଳେ ହାରି ବଡୋଜା ହେ, କଳା ଶ୍ରୀମୁଖ । ୧୨ ।

( ଓ )

ଓଁକାର ଗୋଲକବାସୀ
ଓଷା, ଯାଗ, ଯଜ୍ଞ, ବେଦ ପ୍ରକାଶି ହେ
କଳା ଶ୍ରୀମୁଖ ।
ଔଷଧାଦି ମନ୍ତ୍ର ମିଶି ହେ, କଳା ଶ୍ରୀମୁଖ । ୧୩ ।

( ଔ )

ଔଟ କ୍ଷୀର ବର୍ଣ୍ଣ ଚୋର
ଓଗାଳୀ ରାଧାଙ୍କ ଅଞ୍ଚଳଧର ହେ
କଳା ଶ୍ରୀମୁଖ ।
ଓଟାରି ମହତ ହର ହେ, କଳା ଶ୍ରୀମୁଖ । ୧୪ ।

( ଅଂ )

ଅଙ୍ଗେ ଜଡ଼ସୂତ୍ର ବାନ୍ଧୁ
ଅଖଣ୍ଡ ଚନ୍ଦ୍ରମା ମୁଖ ଶୋଭନ ହେ
ଅଖିଳ ଜନ ପାଳନ ହେ, କଳା ଶ୍ରୀମୁଖ । ୧୫ ।

( ଅଃ )

ଅହଂ ଗୁଣ ମନେ ଧର
ଅନ୍ତଃ ଶାଳରେ ପୂଜନା ମାର ହେ
କଳା ଶ୍ରୀମୁଖ ।
ଅବଳାକୁ ନ ବସ୍ତର ହେ, କଳା ଶ୍ରୀମୁଖ ୧୬ ।

( କ )

କଳା କୃଷ୍ଣ କଞ୍ଜମୁଖ
କୃପାକେଣେ ଖଣ୍ଡି ଫେଡ଼ ମୋ ଦୁଃଖ ହେ
କଳା ଶ୍ରୀମୁଖ ।
କମଳ ଲୋଚନ ରଖ ହେ, କଳା ଶ୍ରୀମୁଖ । ୧୭ ।

( ଖ )

ଖଗାଂଶୁ ବଂଶ ଜନମି
ଖଳେ ପିତା ସତ୍ୟେ ବନକୁ ଗମି ହେ
କଳା ଶ୍ରୀମୁଖ ।
ଖରେ ଘାଇ ଭାର୍ଯ୍ୟା ଦେଲ ହେ, କଳା ଶ୍ରୀମୁଖ । ୧୮ ।

( ଗ )

ଗଙ୍ଗା ପାର ହୋଇ ଗଲ
ଗଜଗମ ନାଶ୍ତି ନକଟେ ହେଲ ହେ
କଳା ଶ୍ରୀମୁଖ ।
ଗଲ୍ଭ ଚର ପାଦ ଦେଲ ହେ, କଳା ଶ୍ରୀମୁଖ । ୧୯ ।

( ଘ )

ଘନ ଶ୍ୟାମଳ ମୂରତି
ଘନସାର ଭୂଷା ସୁତନୁ କାନ୍ତି ହେ
ଜଳା ଶ୍ରୀମୁଖ
ଘନଶ୍ୟାମ ପୀତାପଟ ହେ, ଜଳା ଶ୍ରୀମୁଖ । ୨୦ ।

( ଙ )

ଙଢଳିଲ ଶବସ୍ତକ
ଙଛିଷ୍ଟ ତା ତଥା ଅମ୍ବକୁ ଭକ୍ଷି ହେ
ଜଳା ଶ୍ରୀମୁଖ ।
ଙଲ୍ଲାସରେ ତାକୁ ରଖି ହେ, ଜଳା ଶ୍ରୀମୁଖ । ୨୧ ।

( ଚ )

ଚଣ୍ଡାଳ ଗବଣ ଆସି
ସ୍ନେହ କରି ନେଲ ସ୍ବରୂ ସୁକେଶୀ ହେ
ଜଳା ଶ୍ରୀମୁଖ ।
ସ୍ବପ ଶରେ ତାକୁ ନାଶି ହେ, ଜଳା ଶ୍ରୀମୁଖ । ୨୨ ।

( ଛ )

ଛଡ଼ାଇଲ ସୁର ଖ୍ୟାତି
ଛଟକରେ ଗଇ ଫୈଲକ୍ଷ୍ମି ଦାତି ହେ
ଜଳା ଶ୍ରୀମୁଖ ।
ଛଛନ୍ଦେ କଲ ନୃପତି ହେ, ଜଳା ଶ୍ରୀମୁଖ । ୨୩ ।

( ଜ )

ଜାନକୀଙ୍କି ଉଦ୍ଧରିଲ
ଜଗତରେ ପ୍ରଭୁ ଯଶ ରଖିଲ ହେ
ଜଳା ଶ୍ରୀମୁଖ ।
ଜନମାଙ୍କ ପ୍ରବୋଧିଲ ହେ, ଜଳା ଶ୍ରୀମୁଖ । ୨୪ ।

( ଝ )

ଝାଉଁ ବନବାସୀ ରାମ

ଝୁରି ଝୁରି ଦୁଃଖେ ଯାଉଛି ଦିନ ହେ

ଜଳା ଶ୍ରୀମୁଖ ।

ଝରମୃତେ ତୋଷ ମନ ହେ, ଜଳା ଶ୍ରୀମୁଖ । ୨୫ ।

( ଞ )

ଞମ ଭଙ୍ଗ କୋଦଣ୍ଡ ମୋର

ନୟନେ ଦେଖିବ ଜାନକୀ ବର ହେ

ଜଳା ଶ୍ରୀମୁଖ ।

ନଷ୍ଟପ୍ରୁ ସତ୍ୟ ମୋହର ହେ, ଜଳା ଶ୍ରୀମୁଖ । ୨୬ ।

( ଟ )

ଟାଳ ଅଛି ମୋର ମନ

ଟିକେ ଦୟାକର ଜଗଜ୍ଜୀବନ ହେ

ଜଳା ଶ୍ରୀମୁଖ

ଟଳିଯିବ ଦୁଃଖ ମାନ ହେ, ଜଳା ଶ୍ରୀମୁଖ । ୨୭ ।

( ଠ )

ଠଣ ସୁନ୍ଦର ବଦନ

ଠାକୁରାଣୀ ରାଧା ଜୀବନ ଧନ ହେ

ଜଳା ଶ୍ରୀମୁଖ ।

ଠିକେ ଦଅ ଦରଶନ ହେ, ଜଳା ଶ୍ରୀମୁଖ । ୨୮ ।

( ଡ )

ଡକା ବାଜୁଛି ଜଗତେ

ଢେ଼ରିଅଛ ଶ୍ରୁତି ଭକ୍ତଙ୍କ ହୃତେ ହେ

ଜଳା ଶ୍ରୀମୁଖ ।

ଡରିଲ କା ଦେଖି ଚକ୍ରେ ହେ, ଜଳା ଶ୍ରୀମୁଖ । ୨୯ ।

( ଢ଼ )

ଢ଼ମ ଢ଼ମ ପଟେଣ ମୋର ଶତ୍ରୁ

ଢ଼ୋଲ ବାଦ୍ୟରେ କ ତାଣ୍ଡବ ନୃତ୍ୟ ହେ

କଳା ଶ୍ରୀମୁଖ ।

ଢ଼ାଳେ ମୋ ଜନମ ବ୍ୟର୍ଥ ହେ, କଳା ଶ୍ରୀମୁଖ । ୩୦ ।

( ଣ )

ଣ, ଅକ୍ଷରୁ ଅଣାକାର

ଣ, ଅକ୍ଷର ଅନ୍ତ ନାହିଁ ଭ୍ରମର ହେ

କଳା ଶ୍ରୀମୁଖ ।

ଣ, ଅକ୍ଷରୁ ଭଳ ସଂସାର ହେ, କଳା ଶ୍ରୀମୁଖ । ୩୧ ।

( ତ )

ତ୍ରିଦଶପୁର ଈଶ୍ୱର

ତୁମ୍ଭ ପଦ ପଦ୍ମେ ଭରସା ମୋର ହେ

କଳା ଶ୍ରୀମୁଖ

ତାର ଅବା ପ୍ରଭୁ ମାର ହେ, କଳା ଶ୍ରୀମୁଖ । ୩୨ ।

( ଥ )

ଥୟ ହେଉ ନାହିଁ ମନ

ସ୍ଥୂଳ ସୂକ୍ଷ୍ମ ରୂପ ଦିଅ ଦର୍ଶନ ହେ

କଳା ଶ୍ରୀମୁଖ ।

ଥିର ହେବ ପଞ୍ଚ ମନ ହେ, କଳା ଶ୍ରୀମୁଖ । ୩୩ ।

( ଦ )

ଦୟାନିଧି ନାମ ବନ୍ଧୁ

ଦୟାପଦ ଟିକେ ହୃଦରେ ନାହିଁ ହେ

କଳା ଶ୍ରୀମୁଖ ।

ଦାତା ହୋଇଛ କପାଇଁ ହେ କଳା ଶ୍ରୀମୁଖ । ୩୪ ।

( ଧ )

ଧରଣୀ ସୁତାଙ୍କ ପତି
ଧ୍ୟାନ କରୁଅଛି ଫେଡ ବିପତ୍ତି ହେ
କଳା ଶ୍ରୀମୁଖ ।
ଧନେ ମୋ ନାହିଁ ଆପତ୍ତି ହେ, କଳା ଶ୍ରୀମୁଖ । ୩୫ ।

( ନ )

ନରସିଂହ ରୂପେ ହରି
ନଖରେ ହିରଣ୍ୟ ଦେଲ ବିଦାରି
କଳା ଶ୍ରୀମୁଖ ।
ନନ୍ଦନ ବନ୍ଦନ କାରୀ ହେ କଳା ଶ୍ରୀମୁଖ । ୩୬ ।

( ପ )

ପରମାନନ୍ଦ ମୁରାରି
ପର କର୍ତା କଲ ହେ ବଂଶୀଧାରୀ ହେ
କଳା ଶ୍ରୀମୁଖ ।
ପାଶେ ରଖ ଦାସ କରି ହେ, କଳା ଶ୍ରୀମୁଖ । ୩୭ ।

( ଫ )

ଫଣୀ ଗର୍ବ ଦେବ ଗୁରୁ
ଫନ୍ଦା କରୁଅଛୁଁ ଶ୍ରୀପାଦ ଧରୁ ହେ
କଳା ଶ୍ରୀମୁଖ ।
ଫେଡ ଚିନ୍ତା ନରହରି ହେ, କଳା ଶ୍ରୀମୁଖ । ୩୮ ।

( ବ )

ବାମନ ମୂରତି ହେଲ
ବଳି ଦ୍ୱାରେ ଯାଇ ଦାନ ମାଗିଲ ହେ
କଳା ଶ୍ରୀମୁଖ ।
ବଳି କୁ ପାଦେ ଚାପିଲ ହେ, କଳା ଶ୍ରୀମୁଖ । ୩୯ ।

( ଭ )

ଭରତ ଯୁଦ୍ଧର କାଳେ
ଭରଡିଆ ପକ୍ଷୀ ରଖିଲ ହେଳେ ହେ
କଳା ଶ୍ରୀମୁଖ ।
ଭସୁଥିଲ ରକ୍ତ ଜଳେ ହେ, କଳା ଶ୍ରୀମୁଖ । ୪୦ ।

( ମ )

ମାର୍କଣ୍ଡ ଋଷି ତୁମ୍ଭଙ୍କୁ
ମହା ପ୍ରଳୟରେ ରଖିଲ ତାଙ୍କୁ ହେ
କଳା ଶ୍ରୀମୁଖ ।
ମାୟା ନ ଲଗିଲ ତାଙ୍କୁ ହେ, କଳା ଶ୍ରୀମୁଖ । ୪୧ ।

( ଯ )

ଯଶୋଦା ଦେବାଙ୍କ ସୁତ
ଯେ ଷାମଣି ରାଧା ପରାଣ ମିତ ହେ
କଳା ଶ୍ରୀମୁଖ ।
ଯୋଗୀନ୍ଦ୍ର କାଳଅ ଭୂତ ହେ, କଳା ଶ୍ରୀମୁଖ । ୪୨ ।

( ର )

ରାମକୃଷ୍ଣ ସମ ହରେ
ରହୁଥିବ ମନ ହବା ରାତରେ ହେ
କଳା ଶ୍ରୀମୁଖ ।
ରସନାରେ ଧୀରେ ଧୀରେ ହେ, କଳା ଶ୍ରୀମୁଖ । ୪୩ ।

( ଲ )

ଲକ୍ଷ୍ମୀନାରାୟଣ ଭଜ
ଲସୁ ତଳ କଣ୍ଠେ ଥାଉ ମୋ ମାଳ ହେ
କଳା ଶ୍ରୀମୁଖ ।
ଲଭୁ ଜୀବ ଯିବ ଭ୍ରଳ ହେ, କଳା ଶ୍ରୀମୁଖ । ୪୪ ।

( ୱ )

ବନଫୁଲମାଳେ ଶୋଭ
ବନବିହାରୀଙ୍କି ଦେଖିବ ଅବା ହେ
କଳା ଶ୍ରୀମୁଖ ।
ବଗ୍ଧରେ ମୋ ମନ ଲୋଭ ହେ, କଳା ଶ୍ରୀମୁଖ । ୪୫ ।

( ଶ )

ଶରଣ ରକ୍ଷଣ ବାନା
ଶଙ୍କା ଅନ୍ତର କର କରୁଣା ହେ
କଳା ଶ୍ରୀମୁଖ ।
ଶୋକ ଦୁଃଖ କର ଊଣା ହେ, କଳା ଶ୍ରୀମୁଖ । ୪୬ ।

( ଷ )

ଷଡ଼ାନନ ତାତ ଭକ୍ତ
ଷୋଳଭୁଜା ମନ ପାରିଲେ ରଞ୍ଜି ହେ
କଳା ଶ୍ରୀମୁଖ ।
ଷଡ଼ ଅଇଶିକ ତେଜ ହେ, କଳା ଶ୍ରୀମୁଖ । ୪୭ ।

( ସ )

ସବୁଠାରେ ପ୍ରଭୁ ଅଛ
ସତ ଯୂନେଣ ଡ଼ାକ ଦେଲେ ଶୁଣୁଛ ହେ
କଳା ଶ୍ରୀମୁଖ ।
ସାହା ହୁଅ ନନ୍ଦବତ୍ସ ହେ, କଳା ଶ୍ରୀମୁଖ । ୪୮ ।

( ହ )

ହରି ହରି ନାମ ଧରି
ହରି ନାମ ଭିକ୍ଷା ଶେଷ ମୋହରି ହେ
କଳା ଶ୍ରୀମୁଖ ।
ହରଷରେ ଯିବ ତରି ହେ, କଳା ଶ୍ରୀମୁଖ । ୪୯ ।

( କ୍ଷ )

କ୍ଷମାନିଧି ଶ୍ରୀ ଚରଣ

କ୍ଷମେ ମନୋହର ପଶେ ଶରଣ ହେ

କଳା ଶ୍ରୀମୁଖ ।

କ୍ଷମାକର ନାରାୟଣ ହେ, କଳା ଶ୍ରୀମୁଖ । ୫୦ ।

ଇତି ଶ୍ରୀ କଳା ଶ୍ରୀମୁଖ ଜଣାଣ ସମ୍ପୂର୍ଣ୍ଣମ୍

—:o:—

ଓଁ ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ

# ଶ୍ରୀ ରାଧାମୋହନ ଜଣାଣ

ରାଗ—କୀର୍ତ୍ତନ ସ୍ୱର

କ ଠାରୁ କ୍ଷ ପର୍ଯ୍ୟନ୍ତ

କରୁଛୁ ଜଣାଣ          ହେ ରାଧାମୋହନ
କର ମୋତେ ପରିତ୍ରାଣ ହେ
କରପଦ ଯୋଡ଼ି          ଶ୍ରୀ ଛାମୁରେ ପଡ଼ି
ଶରଣ ତବ ଚରଣ ହେ ।
ଖଣ୍ଡ ବାରେ ମୋର କ୍ଲେଶ
ଖଗପତି ନ କର ନିରାଶ ହେ

( ୧ )

ଗୋକୁଳ ବିହାରୀ          ଧେନୁ ମୋ ଗୁହାରି
ନ ରଖିଲେ ଗଲି ଭାସି ହେ
ଗଜରାଜ ଜଳେ          ଡାକନ୍ତା ବିକଳେ
ଗ୍ରାହା ନିବାରିଲ ଆସି ହେ ।

ଘୋର ବନରେ ହରିଣୀ
ଘନଶ୍ୟାମ ରଖିଅଛ ଆଣି ହେ ।

( ୨ )

ଅନ୍ଧଙ୍କୁ ନୟନ- ଦେଲ ନାରାୟଣ
ସୁଦାମାଙ୍କୁ ଦେଲ ଧନ ହେ
ଅହି ଶିରେ ନୃତ୍ୟ କଲ ନନ୍ଦ ସୁତ
ଦେଲ କଠାଉର ଚିହ୍ନ ହେ ।
ଚନ୍ଦ୍ରଶେଖାଙ୍କ ଘରଣୀ
ଚିତ୍ତ ଶ୍ବେତ ଭୁଜ୍ଞ ମାନମଣି ହେ ।

( ୩ )

ଛ ବେନ-ନୟନ ଛାଡ଼ିବାକୁ ମନ
ଛନେ ବସ୍ତ୍ରା ନେଲେ ହରି ହେ
ଛଇଳ ନାଗର ଅଙ୍ଗ ଜାତ କଲ
ଧାତା ଗର୍ବ ଜଳ ଚୂରି ହେ ।
ଜଗନ୍ନାଥ ହେ ଅନନ୍ତ
ଜଗତେ କେ ନ ପାବନ୍ତି ଅନ୍ତ ଯେ ।

( ୪ )

ଝାଡ଼ ବନେ ଯେହ୍ନେ ଆକୁଳିତ ମନେ
ଧାଉଥା ହରିଣୀ ମତ୍ତ ହେ
ଝାମ ଯୁଗ ସମ- ହେବାରୁ ହେ ରାମ
ନରବଧି ମୋର ଚିତ୍ତ ହେ ।
ନୀଳ ସୁନ୍ଦର ଶ୍ରୀମୁଖ
ନାଶ କର ମୋ ଅଶେଷ ଦୁଃଖ ହେ ।

( ୫ )

ଚକ୍ରଧର-ଅଗ୍ର- ପିଅର ହେ ହରି
ମୋ କର୍ମେ କପାଁ ନଷ୍ଠୁର ହେ
ଟେକି ଅଛ ଭୁଜ ଆହେ ଦେବରାଜ
ଯେବେ ଅରଜ ମୋହର ହେ ।
ଠାବ ଦେଇ ବାରେ ରଖ
ଠିକେ କହେ ମନୋହର ମୂର୍ଖ ସେ ।

( ୬ )

ଡାକ ବାଜୁଅଛୁ ବିଦେଶେ ଶୁଭୁଛୁ
ଶୁଣୁଅଛ କର୍ଣ୍ଣ ତୋର ହେ
ଡାକି ଡାକି ଦୁଃଖୀ ହୋଇଲେ ନିର୍ମାଣ
ଦେଖୁଁ ଦେଖୁଁ ଗଲେ ସରି ସେ
ତାଙ୍କେ କର ହେ କରୁଣା
ତାଙ୍କି ରଖ ନନ୍ଦ ସୁତ କାହ୍ନା ହେ ।

( ୭ )

ଅପୁତ୍ରୀ କ ପୁତ୍ର ନିର୍ଦ୍ଧନ କ ଧନ
ଯାଚି ଦିଅ ରାଧାବର ହେ,
ଅନ୍ନପୂର୍ଣ୍ଣା-ପତି ଫେଡ ମୋ ଦୁର୍ଗତି
ମୁଁ କ ସଂସାରୁ ବାହାର ହେ ।
ଶାନ୍ତି କର ବାରେ ପ୍ରଭୁ
ତୁମ୍ଭେ ଅଟ ପିତା ମୋର ସବୁ ହେ ।

( ୮ )

ସ୍ଥାବର ଜଙ୍ଗମ କୀଟ ପତଙ୍ଗମ
ସବୁ ହୃଦେ ବିରାଜଛ ହେ,

ଥାଇ ତୁମ୍ଭେ ପ୍ରଭୁ ଦାନ ଲଭ ସବୁ
ଜଗତର ଦେଖୁ ଅନ୍ଧ ହେ ।
ଦୀନ ଜନରେ କରୁଣା
ଦୀନବନ୍ଧୁ ନାମେ ଉଡେ ବାନା ହେ ।

( ୯ )

ଧ୍ରୁବ ପ୍ରହଲ୍ଲଦ ସେବି ତୁମ୍ଭ ପାଦ
ଧ୍ୟାଉଛନ୍ତି ସଦା କାଳ ହେ ।
ଧର୍ମ ସୁତ-ନାଶ୍ୱ ଚନ୍ଦ୍ରବାରୁ ଦର
କୋଟି ବସ୍ତ୍ର ବଢାଇଲ ହେ ।
ନାମ ସୁରଣେ ତୁମ୍ଭର
ନାନା ବିପଦ ହୁଅଇ ଦୂର ହେ ।

( ୧୦ )

ପତିତ ପାବନ ଉଣ୍ଚୁଛ କେତନ
ନୀଳଚକ୍ରେ ଉଡ଼େ ଧ୍ୱଜା ହେ
ପଙ୍କଜ ପତ୍ରୁର ସେବି ଦୁଃଖ ଭର
ନ ଗଲା ଦେବାଧି ରାଜା ହେ ।
ଫେଡ କଷଣ ମୋହର
ପୂରୁଣାରେ ବେଗେ ଆଜ୍ଞା କର ହେ ।

( ୧୧ )

ବସୁଦେବ-ସୁତ ଅହେ ରାଧାକାନ୍ତ
ସତେ କି ଦର୍ଶନ ଦେବ ହେ ।
ବସ୍ତୁରୁଛ ମନ ଏ ପାପୀ ନୟନ
ଦେଖି ମୁକତି ଲଭିବ ହେ ।
ଭଜ ଯାଉ ମୋର ଦିନ
ଭଣେ ମନୋହର ଦୀନ ଜନ ସେ ।

( ୧୨ )

ମହିମା ସାଗର  ନାମକୁ ଭ୍ରମର
ଧ୍ୟାନ କରୁଅଛୁ ଚିତ୍ତେ ହେ
ମୋ କର୍ମେ ଶ୍ରୀଧର  ହୋଇଲ ବଧିର
ନ ଶୁଣୁଛ କର୍ଣ୍ଣପଥେ ହେ ।
ଯଦୁବଂଶ ମହାବାହୁ
ଯଶ ଉଠିବକ ଗଲେ ଆଜ ହେ ।

( ୧୩ )

ରାଧା-ଧବ-ତବ  କୃପା ଯେବେ ହେବ
କ କରିପାରେ ବିପତ୍ତି ହେ ।
ରାଜୀବ ଲୋଚନ  ଆହେ ପରଂବ୍ରହ୍ମ
ଘେନ ମୋହର ବିନତି ହେ ।
ଲଘୁ ନ କର ଯେ ମୋତେ
ଲମ୍ବ କରିଛୁ ଶ୍ରୀ ପାଦ ତଳେ ହେ ।

( ୧୪ )

ବନ୍ୟ ମୃଗ-ଜାତି-  ବଶେ ହୋଇ ଜାତି
ସାଗରେ ସେତୁ ବାନ୍ଧିଲ ହେ
ବିଂଶବାହୁ ନାଶ  କରି ସୀତାଶ୍ରିତ
ବିଭୀଷଣେ ରାଜା କଲ ହେ ।
ସୀତା ଦେବୀଙ୍କୁ ଉଦ୍ଧାର
ଶୁଭେ ଫେରିଲ ଅଯୋଧ୍ୟା ପୁରୀ ହେ ।

( ୧୫ )

ସୁମଙ୍ଗଳମସ୍ତୁ  ଅଥ ପୁଣ୍ୟମସ୍ତୁ
ସକଳ ହୃଦରେ ବସ ହେ,

ସତ, ଶାନ୍ତ, କ୍ଷମା ଦୟାର ମହିମା
ପୂର ଅଛୁ ଚତୁର୍ଦ୍ଦଶ ହେ ।
ସତ୍ୟ ସୃଜନ ହେଉଣ
ସ୍ୱାମୀ କର ବାରେ ପରିହାଣ ହେ ।
( ୧୬ )

ହଟ ମୋ ଏତକ ଶ୍ରୀ ପାଦକୁ ଟାକ
ଟାକଅଛୁ ମନ ମୂଷା ଯେ
ହୋଇଲେ କରୁଣା ଦୁଃଖ ହେବ ଊଣା
ଫିଟିଯିବ ମୋ ଦୁର୍ଦ୍ଦଶା ଯେ
କ୍ଷମା କର ହେ ଶ୍ରୀହରି
କ୍ଷମେ ମନୋହରକୁ ଜଡ଼ିକରି ଯେ ।
( ୧୭ )

ଇତି ଶ୍ରୀ ରାଧାମୋହନ ଜଣାଣ ସଂପୂର୍ଣ୍ଣମ୍ ।

—ଃ୦ଃ—

# ବିଜ୍ଞାପନ

## ଗାୟକମାନଙ୍କ ପ୍ରଶ୍ନ-ଉତ୍ତର
## ଚଉପଦୀ ଓ ପଟଳ

| | |
|---|---|
| ପ୍ରାଚୀନ ଚଉପଦୀ ରତ୍ନମାଳା | ଟ୦-୭୨ |
| ଗାୟକ ସର୍ବସ୍ୱ | ଟ୦-୫୦ |
| ଗୀତ ରତ୍ନମାଳା | ଟ୦-୧୯ |
| ଭାବ ଚଉପଦୀ ମାଳା | ଟ୦-୨୫ |
| ବୃହତ୍ ପଟଳ | ଟ୦-୩୦ |
| ସମ୍ପୂର୍ଣ୍ଣ ପଟଳ | ଟ୦-୨୫ |
| ଦଶପଟଳ ମାଳିକା | ଟ୦-୭୫ |
| ଚଉପଦୀ ଭୂଷଣ | ଟ୦-୧୯ |
| ଚଉପଦୀ ଚନ୍ଦ୍ର | ଟ୧-୧୨ |
| ବୃନ୍ଦ ପଟଳ | ଟ୦-୨୫ |
| ଶ୍ରୀକୃଷ୍ଣ ଚଉପଦୀ | ଟ୦-୫୦ |
| ସମସ୍ୟା ଗୀତମାଳା | ଟ୦-୩୭ |
| ଶୋଭା ପଟଳ | ଟ୦-୬୨ |
| ଭାଗବତ ପଟଳ | ଟ୧-୦୦ |
| ମହାଭାରତ ପଟଳ / ଗାୟକ ଭୂଷଣ ଚଉପଦୀ | ଟ୧-୦୦ |
| ନୃସିଂହ ପୁରାଣ ପଟଳ | ଟ୦-୩୭ |
| ଗାୟକ ରତ୍ନପଦାବଳୀ / ଚଉପଦୀ ରସକଲ୍ଲୋଳ | ଟ୦-୩୭ |
| ଗାୟକ ଗୁଣମାଳା / ଚଉପଦୀ ଚିନ୍ତାକଦମ୍ବ | ଟ୧-୭୫ |
| ଗାୟକ ଜ୍ୟୋତିଷଚଢ଼ା | ଟ୦-୭୫ |
| ଦଣ୍ଡନାଟ | ଟ୧-୦୦ |
| ଗାୟକ ମାଳିକା | ଟ୦-୨୫ |
| ଗାୟକ ରତ୍ନ ଭଣ୍ଡାର | ଟ୦-୬୦ |
| ଚଉତିଶା ପ୍ରଶ୍ନ | ଟ୦-୮୮ |
| ପାଲ୍ଲା ସଙ୍ଗୀତ ଚୌପଦୀମାଳା | ଟ୦-୭୫ |
| ଅବନା ଚୌପଦୀ | ଟ୦-୨୫ |
| ଦଣ୍ଡନାଟ ରସକେଳି | ଟ୦-୧୨ |

# ଆୟୁର୍ବେଦ-ଦର୍ପଣ

ମୂଲ୍ୟ ଟ ୧୦୯

ପ୍ରାପ୍ତିସ୍ଥାନ—ଦାଶରଥି ପୁସ୍ତକାଳୟ, କଟକ-୨